ବୃହତ୍

# ହରି ଅର୍ଜ୍ଜୁନ କଳି



ଓଡ଼ିଶା ଜଗନ୍ନାଥ କମ୍ପାନୀ
ଶ୍ରୀ ଜଗନ୍ନାଥ ସିଂହ
ବାଲୁବଜାର ପୋ: ଚାନ୍ଦନୀଚୌକ
କଟକ

ନୂତନ ମୁଦ୍ରଣ

ମୂଲ୍ୟ ପଚାଶପଇସା ମାତ୍ର

# ବୃହତ୍

# ହରି ଅର୍ଜ୍ଜୁନ କଳି



ଓଡ଼ିଶା ଜଗନ୍ନାଥ କମ୍ପାନୀ
ଶ୍ରୀ ଜଗନ୍ନାଥ ସିଂହ
ବାଲୁବଜାର୍ ପୋ: ଗ୍ରାଣ୍ଡମାର୍କେଟ
କଟକ

ନୂତନ ମୁଦ୍ରଣ    ମୂଲ୍ୟ ପଚାଶପଇସା ମାତ୍ର

## ବୃହତ୍

# ହରି ଅର୍ଜୁନ କଳି

( ଗୁଣସାଗର ବୃତ୍ତେ )

ଜୟ ରାଧାକାନ୍ତ ଅଚ୍ୟୁତ ଅନନ୍ତ ଗୋବିନ୍ଦ ଗୋପାଳ ହରି
ମୁକୁନ୍ଦ ମାଧବ ଶ୍ରୀକୃଷ୍ଣ କେଶବ ଜୟ ଦେବ ଦଇତାରି ।
ଜୟ ଦୀନବନ୍ଧୁ ଜୟ କୃପାସିନ୍ଧୁ ଜୟ ଶ୍ରୀ ଗୋପୀମୋହନ
ଜୟ କଂସଅରି ଜୟ ରାବଣାରି ଜୟ ଆରତଭଞ୍ଜନ ।
ଜୟ ଲକ୍ଷ୍ମୀପତି ଜୟ ସୀତାପତି ଜୟ ଜୟ ଆନନ୍ଦକନ୍ଦ
ଜୟ ହିରଣ୍ୟକଶିପୁ ଦୈତ୍ୟଅରି ଜୟ ଯଦୁକୁଳ ଚନ୍ଦ ।
ଶ୍ରୀମଧୁସୂଦନ ଶ୍ରୀନନ୍ଦନନ୍ଦନ ଜୟ ଜୟ ବନମାଳୀ
ଜୟ ନାରାୟଣ ପତିତପାବନ ଜୟ ଜୟ ଦେବ ହଳୀ ।
ଆହେ ନରହରି ଗୋବର୍ଦ୍ଧନଧାରୀ କରନ୍ତି ହୃଦେ ମାନସ
ଶ୍ରୀହରି ଅର୍ଜୁନ କଳିର ବିଧାନ କରିବାକୁ ପରକାଶ ।
ଯେବେ ହେବ ତୁମ୍ଭ ହୃଦୟରେ ଦୟା ହେବ ମୋର ପୂର୍ଣ୍ଣକାମ
ପଶିଲି ଶରଣ ହେ କଞ୍ଜନୟନ ଗୋପୀନାଥ ମୋର ନାମ ।
ଆହେ ଜଗନ୍ନାଥ ଅନାଥର ନାଥ ଜୟ ଜୟ ଚକ୍ରଧର
କର ମୋତେ ଦୟା ଆହେ ଚଜବାହା ମାନସ ପୂରୁ ମୋହର ।
ଆହେ ସାଧୁଜନମାନେ ଦେଇ ମନ ଧୀରେ ଶୁଣ ଏ ଚରିତ
କଳିର କଳୁଷ ବାଧା ନ ଲାଗିବ ପାପରୁ ହେବ ମୁକତ ।
ଶ୍ରୀକୃଷ୍ଣ ମହିମା କେ ବର୍ଣ୍ଣି ପାରିବ ଅଚିନ୍ତ ଭକ୍ତ-ସୋଦର
ନାନାରୂପ ହୋଇ ଭୂଭାର ନାଶିଲେ ସେହୁ ବ୍ରହ୍ମାଣ୍ଡଠାକୁର ।

ବ୍ରହ୍ମ ଶାପ ଯୋଗୁଁ ରାଜା ପରୀକ୍ଷିତ ମନେ ହୋଇ ଦୁଃଖୀ ଅତି
ଏମନ୍ତ ସମୟେ ପ୍ରବେଶିଲେ ଯାଇଁ ମହାମୁନି ଶୁକ ଯତି ।
ଦେଖି ନରସାଇଁ ପୁଲକିତ ହୋଇ ତାଙ୍କ ଚରଣ ପୂଜିଲେ
ସାଷ୍ଟାଙ୍ଗେ ପ୍ରଣାମ କରି ନରସାଇଁ ଆସନରେ ବସାଇଲେ ।
ସନ୍ତୁଷ୍ଟ ହୋଇଣ ଶୁକ ମହାଯତି ବୋଲନ୍ତି ହେ ରାଜା ଶୁଣ
ଅଜ୍ଞାନରେ କପାଁ ବିପ୍ରେ ଅପମାନ କଲ ହୋଇ ପୁଣ୍ୟବାନ ।
ଶୁଣି ଏ ଭାରତୀ ବୋଲେ ନରପତି ଶୁଣ ତାପସପ୍ରବର
ଅହଙ୍କାର କରି ନରକେ ପଡ଼ିଲି ନ କରି ଧର୍ମ ବିଚାର ।
ଅହେ ମୁନିବର ପରିତ୍ରାଣ କର କୃପା କରି ବ୍ରହ୍ମଶାପୁଁ ।
କି ଉପାୟ କଲେ ଏ ବିପଦୁଁ ଭଲେ ପାରିହେବି ମନସ୍ତାପୁଁ ।
ଶୁକଦେବ ଭଣି ଶୁଣ ନୃପମଣି ମନଦୁଃଖ ତ୍ୟାଗ କର
କହୁଛୁ ଉପାୟ ହୋଇବ ନିଶ୍ଚୟ ତୁମ୍ଭେ ନିଷ୍ପାପ ଶରୀର ।
ଭାଗବତ କଥା ଶ୍ରୀକୃଷ୍ଣ ଚରିତ ଶୁଣ ହୋଇ ଏକଚିତ୍ତ
ପାପ ତାପ ଆଦି ନିଶ୍ଚେ ନାଶଯିବ ଧର୍ମ ହୋଇବ ପ୍ରାପତ ।
ଶୁଣି ନରପତି ଆନନ୍ଦିତ ହୋଇ ମୁନିଙ୍କ ଚରଣ ଧରି
ଯେବେ କୃପାକଲ ଭାଗବତ କଥା ମୋତେ କହିବା ବିସ୍ତାରି
ରାଜାଙ୍କ ବିନତି ଦେଖି ଶୁକଯତି କହନ୍ତି ହେ ନୃପ ଶୁଣ
ଯେଉଁ ଭାବେ କୃଷ୍ଣ ଅର୍ଜୁନଙ୍କ କଳି କହିବା ତାର ବିଧାନ ।
ଯଦୁନଗ୍ରେ ଜାତ ନାମ ସତ୍ରାଜିତ ଧନମଣିଙ୍କୁ ସେବିଲେ
ଦ୍ୱାଦଶ ବରଷ ଅନ୍ତେ ଧନନାଥ ତାଙ୍କୁ ପ୍ରସନ୍ନ ହୋଇଲେ ।
ନିକଟେ ପ୍ରବେଶ ହୋଇଣ ଧନେଶ ବୋଲନ୍ତି ହେ ସତ୍ରାଜିତ
ସେବାରେ ସନ୍ତୋଷ ହେଲି ମୁହିଁ ତୋର ଆଜୁଁ ତୁ ମୋହର ପି
ଆନନ୍ଦେ ତପନ ହୋଇଣ ପ୍ରସନ୍ନ କଣ୍ଠୁ କାଢ଼ି ରତ୍ନମଣି
ଆଲିଙ୍ଗନ କରି ସତ୍ରାଜିତ ଗଳେ ଲମ୍ବାଇଲେ ପୁଣି ।

ପାଇଣ ସ୍ୟମନ୍ତମଣି ସତ୍ରାଜିତ ଗୃହେ ଆସିଣ ମିଳିଲା
ନିତ ଅଷ୍ଟଭାର ସୁବର୍ଣ୍ଣ ମଣିରୁ ପ୍ରସବ ହେଲା ଦେଖିଲା ।
ସ୍ୟମନ୍ତମଣିକୁ ଯତନରେ ନେଇ ରଖିଲା ଦେବମନ୍ଦିରେ
ଦେବଙ୍କ ସଙ୍ଗତେ ମଣିବରରେ ନିତ୍ୟେ ପୂଜୁଥାନ୍ତି ଶ୍ରଦ୍ଧାରେ ।
କେତେଦିନ ଅନ୍ତେ ପ୍ରଭୁ ଗୋପୀନାଥ ସତ୍ରାଜିତଙ୍କୁ ଡକାଇ
ବୋଲନ୍ତି ମଣିକୁ କିଛିଦିନ ପାଇଁ ଉଗ୍ରସେନେ ଦିଅ ତୁମ୍ଭେ ।
ଗୋବିନ୍ଦଙ୍କଠାରୁ ଶୁଣିଣ ଏ ଗିର ମଉନ ହୋଇ ରହିଲା
ଦେବା ନ ଦେବାର କିଛି ନ କହିଣ ଗୃହକୁ ଫେରିଣ ଗଲା ।
ଲୋଭେ ବଶୀଭୂତ ହୋଇ ସତ୍ରାଜିତ ମନେ ଭାବେ ହୋଇ ଦୁଃଖୀ
ଅଷ୍ଟଭାର ସ୍ୱର୍ଣ୍ଣ ଭଣ୍ଡାରେ ମୋହର ଦିଅଇ ଯେ ରତ୍ନମଣି ।
କେମନ୍ତେ ମୁଁ ତାକୁ ଉଗ୍ରସେନ ଦେବି ଉଚିତ ନୁହଇ ମୋର
କହିଥିଲା ଯାଏ ମଣି ମୁଁ ନ ଦେବି ଯାହା କରୁ ଚକ୍ରଧର ।
ଏଥୁ ଅନନ୍ତରେ ଶୁଣ ନରନାଥ ପ୍ରସେନଜିତ ତାର ଭ୍ରାତ
କଣ୍ଠେ ମଣି ଭିଡ଼ି ଅଶ୍ୱରେ ଚଢ଼ିଣ ବନକୁ ଗଲା ତ୍ୱରିତ ।
ଆନନ୍ଦିତ ମନେ ମୃଗ ମାରିବାକୁ ପଶିଲା ଗହନବନେ
ଅଶ୍ୱ ଶବ୍ଦ ପାଇ ଏକ ପଶୁରାଜ ମିଳିଲା ତା ସନ୍ନିଧାନେ ।
ଅଶ୍ୱସହିତରେ ମାରିଣ ତାହାକୁ ମଣି ତାର କଣ୍ଠୁ ନେଲା
ପର୍ବତ ଗୁହାକୁ ଗମନ୍ତେଣ ଖରେ ଜାମ୍ବବ ତାହା ଦେଖିଲା ।
ସିଂହକୁ ଦେଖିଣ ଭଲ୍ଲୁକ ରୂପରେ ତା ସଙ୍ଗେ କଲା ସମର
ଚଣ୍ଡି ଚାପି ତାକୁ ମାରି ବଜ୍ରମୁଷ୍ଟି ଚୂର୍ଣ୍ଣ କଲା ତାର ଶିର ।
ମଣି ଘେନି କରେ ପଶିଲା ବିଳରେ ପାତାଳେ ଯାଇଁ ମିଳିଲା
ସନ୍ତୋଷ ମନରେ ମଣି ଘେନି କରେ ପୁତ୍ରୀକଣ୍ଠେ ଲମ୍ବାଇଲା ।
ଏଣେ ସତ୍ରାଜିତ ଭ୍ରାତାର ବିଳମ୍ବେ ମନେ ହୋଇ ବଡ଼ ଦୁଃଖୀ
ମନ ଛନ୍ନ ଛନ୍ନ ବିକଳ ହୋଇଣ ପଥକୁ ଗୃହେଁ ନିରେଖି ।

ପୁଣି ମନେ ଭାଳେ କାହିଁ ନ ଆଇଲା କି ଅବା ହେଲା ପ୍ରମାଦ
ବିକଳେ ବେଦନ କରି ବିଚାରଇ କି ଅବା ହେଲା ଆପଦ ।
ପୁଣି ବିଚାରିଲେ ପ୍ରଭୁ ଚକ୍ରଧର ମାଗିଥିଲେ ମୋତେ ମଣି
ଦେବା ନ ଦେବାରୁ କିଛି ନ କହିଣ ଅଛନ୍ତି ହୋଇଣ ତୁନି ।
କି ଅବା ଶ୍ରୀହରି ମୋତେ ମାୟା କରି ଗୁପ୍ତ ବନକୁ ଯାଇଣ
ମୋହର ଭ୍ରାତାକୁ ପ୍ରାଣେ କରି ହତ ମଣିକୁ କଲେ ହରଣ ।
ସତ୍ରାଜିତ ବାଣୀ ସର୍ବଜନେ ଶୁଣି ବସି କରନ୍ତି ବିଚାର
କପାଳେ ଗୋବିନ୍ଦ କଲେ ଏତେ କର୍ମ ଏ ନୁହେଁ ଧର୍ମବିଚାର ।
ଏହିପରି ସର୍ବେ କୁହାକୁହି ହୋନ୍ତେ ଶୁଣିଲେ ତାହା ଶ୍ରୀହରି
ଲୋକ ଅପବାଦ ଯୋଗୁଁ ଆନନ୍ଦକନ୍ଦ ସର୍ବ ଜନଙ୍କୁ ହକାରି ।
ବୋଲନ୍ତି ବଚନ ଶୁଣ ସର୍ବଜନ ହେଲା ବଡ଼ ଅପମାନ
ପ୍ରସେନାଜିତକୁ ଖୋଜିବା ନିମନ୍ତେ ବନେ ଯିବା ସର୍ବଜନ ।
ଶ୍ରୀକୃଷ୍ଣ ବଚନେ ମିଳି ଜନମାନେ ସଙ୍ଗେ ଘେନି ବନମାଳୀ
କେତେହେଁକ ଦୂର ଖୋଜିଣ ଯାଆନ୍ତେ ପ୍ରସେନାହତ ସ୍ଥାନେ ମିଳି ।
ଅଶ୍ୱ ସହିତରେ ମରି ପଡ଼ିଅଛି ଦେଖିଣ ହେଲେ ଚକିତ
ସିଂହ ପାଦ ଚିହ୍ନ ଦେଖିଣ ବୋଲନ୍ତି ପଶୁରାଜ କଲା ହତ ।
ତାର ପାଦଚିହ୍ନ ଦେଖିଣ ମୋହନ ଥୋକାଏକ ଦୂରେ ଗଲେ
ଘୋର ବନମଧ୍ୟେ ଗିରିର ନିକଟେ ସିଂହ ମରଣ ଦେଖିଲେ ।
ସିଂହର ମରଣ ଅନୁସରି ସର୍ବେ ଦେଖି ଭଲ୍ଲୁକ ଚରଣ
ଚିହ୍ନକୁ ଲକ୍ଷି ସେ ଯାନ୍ତେ କେତେଦୂର ବିଲେକ ଦେଖିଲେ ପୁଣ ।
ଚରଣର ଚିହ୍ନ ପଶିଅଛି ବିଳେ ଦିଶେ ଘୋର ଅନ୍ଧକାର
ଉପାୟ ନ ଦେଖି କି କରିବା ବୋଲି ସମସ୍ତେ ହେଲେ କାତର ।
ବୋଲନ୍ତି ମୋହନ ସର୍ବ ପ୍ରଜାଜନ ସାବଧାନେ ଏହିଠାରେ
ବସ ମୁହିଁ ଆଜ ଲୋକ ଅପବାଦେ ପଶିବି ବିଳ ମଧ୍ୟରେ ।

ଏମନ୍ତ କହିଣ ଦେବ ଜନାର୍ଦ୍ଦନ ବିଳରେ ପଶିଲେ ଧାଇଁ
ଦୁର୍ଗମ ଅନ୍ଧାର ପଥରେ ଗମନ୍ତ ମନଦୁଃଖେ ଭାବଗ୍ରାହୀ ।
ଏହିପରି କେତେ ଦୂର ଚଳିଯାନ୍ତେ ଦେଖିଲେ ପାତାଳପୁର
ଜାମ୍ବବ ନାମେଣ ଏକଇ ବାନର କରିଅଛି ତହିଁ ଘର ।
ତାର ପୁତ୍ରୀକଣ୍ଠେ ରତ୍ନମଣି ଥିବା ଦୂରୁଁ ଦେଖି ପୀତବାସ
ମଣିକି ଲଭିବା ଆଶେ ଦଇତ୍ୟାରି ମିଳିଲେ ତାହାର ପାଶ ।
ଅପୂର୍ବ ରୂପ ଦେଖିଣ ଜଣେ ଧାତ୍ରୀ ପୁତ୍ରୀକି କୋଳରେ ଧରି
ଭୟରେ କାତର ହୋଇ ଉଚ୍ଚସ୍ୱରେ ଡାକଇ ଚିତ୍କାର କରି ।
ସେ ଚିତ୍କାର ନାଦ ଶୁଣିଣ ଜାମ୍ବବ ଭିତରୁ ଧାଇଁ ଆଇଲା
ମହା ଭୟଙ୍କର ରୂପ ଧରି ବେଗେ ପୁତ୍ରୀର ପାଶେ ମିଳିଲା ।
ଦେଖିଲା ଶ୍ରୀକୃଷ୍ଣ ଉଭା ହୋଇଛନ୍ତି ହୃଦରେ ଶ୍ରୀବତ୍ସ ଚିହ୍ନ
ନିଜ ନାଥ ବୋଲି ଚିହ୍ନି ନ ପାରଇ ମାୟା କଲେ ସେ ମୋହନ ।
ଇତର ଲୋକ ପରାୟେ ମଣି କୋପେ ଧାଇଁଲା ସେ ଜାମ୍ବବନ୍ତ
କ୍ରୋଧଭର ହୋଇ ଭଲ୍ଲୁକ ସ୍ୱଭାବେ ଧରିଲା ଶ୍ରୀକୃଷ୍ଣ ହସ୍ତ ।
ହରିଙ୍କ ମହିମା ନ ଜାଣି ଜାମ୍ବବ ତକ୍ଷଣେ ପାଦକୁ ଛନ୍ଦି
ଧ୍ୱଜ ଯୁଗଳେ ଭୁଜକୁ ବାନ୍ଧିକରି ହୃଦେ ହୃଦ ଦେଲା ରୁନ୍ଧି ।
ମାଲବନ୍ଧେ ଘୋର ଯୁଦ୍ଧ ଆରମ୍ଭିଲା ବଳେ ଅଟେ ବଳିଆର
ବୃକ୍ଷ ପାଷାଣ ନାନାବିଧ ଆୟୁଧ ଧରି କରଇ ସମର ।
କୋପେ ଅଷ୍ଟାଦଶ ଦିନ ବେଳିଜନ କଲେ ଘୋର ରଣରଙ୍ଗ
କୃଷ୍ଣ ବଜ୍ରମୁଷ୍ଟି ପ୍ରହାରେ ଜାମ୍ବବ ନ ସହିଣ ହେଲା ଭଙ୍ଗ ।
ଶ୍ରୀକୃଷ୍ଣ ବଦନ ଚାହିଁ ଜାମ୍ବବନ୍ତ ପାଇଲାକ ଦିବ୍ୟଜ୍ଞାନ
ବୋଲଇ ହେ ନାଥ କ୍ଷମା ମୋତେ କର ଅଟେ ମୁହିଁ ପଶୁ ହୀନ ।
ଅନାଦି ଅନନ୍ତ ପରମପୁରୁଷ ପରମାତ୍ମା ଯୋଗେଶ୍ୱର
ସେତୁବନ୍ଧ ବାନ୍ଧି ଲଙ୍କାଦୁର୍ଗ ଧ୍ୱଂସି ନାଶ କଲ ଦଶଶିର ।

ଏମନ୍ତ ମହିମା ହେ ନାଥ ତୋହର ମୁଁ ଗୁରୁ ନ ଜାଣି ତୋତେ
ଦୋଷ କ୍ଷମା କର ମୁଁ ତୋର କିଙ୍କର ବାଞ୍ଛା କର ପ୍ରଭୁ ମୋତେ ।
ଶୁଣିଣ ଗୋବିନ୍ଦ ହସି ମନ୍ଦ ମନ୍ଦ ଜାମ୍ବବକୁ ଦୟା କରି
ମେଘ ଗମ୍ଭୀର ପ୍ରାୟେ ବାଣୀ ଭାଷନ୍ତି ତାର ଦୁଇ କର ଧରି ।
ଶୁଣ ଆହେ ବୀର ଯେ ନିମନ୍ତେ ମୋର ତୋର ପୁରେ ଆଗମନ
ତୋର ପୁତ୍ରୀକଣ୍ଠେ ଯେଉଁ ମଣିଅଛି ତା ଦେଇ ତୋଷ ମୋ ମନ ।
ଏ ମଣି ନିମନ୍ତେ ଯଦୁପୁରେ ମୋତେ ଦେଇଅଛି ଅପବାଦ
ଦୁଃସହ ଜନଙ୍କ ମିଥ୍ୟା ବଚନରେ ପାଉଛି ମୁଁ ମନଖେଦ ।
ଶ୍ରୀକୃଷ୍ଣ ବଚନେ ଜାମ୍ବବନ୍ତ ବୀର ମନେ କରଇ ବିଚାର
ଅନାଦି ପୁରୁଷ ପୁରେ ବିଜେ କଲେ କିବା ଦେବା ଉପହାର ।
ଏମନ୍ତ ବିଚାରି କନ୍ୟାକୁ ସୁବେଶ କରି ତାର କଣ୍ଠେ ମଣି
ଦେଇଣ ଆନନ୍ଦେ କୃଷ୍ଣ ପାଦପଦ୍ମେ କନ୍ୟା ସମର୍ପିଲା ଆଣି ।
ବୋଲଇ ଗୋବିନ୍ଦ ବାଞ୍ଛା ମୋତେ କର ନ ଘେନିବ ମୋହଦୋଷ
ନ ଚିହ୍ନିଣ ତୋତେ ଅପରାଧ କଲି କ୍ଷମ ପରମ ପୁରୁଷ ।
ଏତେ ସର୍ବଜନ ବିଳଦ୍ୱାରେ ଥାଇ କୃଷ୍ଣଙ୍କ ବିଳମ୍ବ ଦେଖି
ନିରାଶ ହୋଇଣ ଗୃହକୁ ଗମନ କଲେ ହୋଇ ମନେ ଦୁଃଖୀ ।
କାନ୍ଦିଣ ଦେବକୀ ବସୁଦେବ ଆଗେ କହି ସର୍ବ ସମାଚାର
ରୁକ୍ମିଣୀ ସହିତେ ଯେତେକ ଯାଦବ ଶୁଣି ହୋଇଲେ କାତର ।
ଦ୍ୱାରକାପୁରର ସର୍ବଜନେ ଯାଇ ସତ୍ରାଜିତକୁ କହନ୍ତି
ତୋହର ଯୋଗରୁ ଶ୍ରୀକୃଷ୍ଣ ବନ୍ଧନେ ଆମ୍ଭ ହୋଇଲା ବିପତ୍ତି ।
ନ ଦେଖି ଗୋବିନ୍ଦେ ସର୍ବେ ନିରାନନ୍ଦେ ଶ୍ରୀକୃଷ୍ଣ ଲଭିବା ଆଶେ
ନାନା ଉପହାର ପଦାର୍ଥ ଘେନିଣ ପ୍ରବେଶି ଦୁର୍ଗାଙ୍କ ପାଶେ ।
ନମୋ ଆଦ୍ୟମାତ ଯାଦବେ ଅନାଥ କୃଷ୍ଣଙ୍କ ଯୋଗୁ ହୋଇଲୁଁ
ଆମ୍ଭ ଦୁଃଖ ନାଶ ହୋଇବା କାରଣ ତୋ ପାଦେ ଶରଣ ଗଲୁଁ ।

ସଦୁମାନଙ୍କର ଦୁଃଖ କଷ୍ଟେ ଶୁଣି କହନ୍ତ ଶମ୍ଭୁବନିତା
ଏକ୍ଷଣି ଦେଖିବ ଶ୍ରୀକୃଷ୍ଣଙ୍କ ମୁଖ ନ କର ମନରେ ଚିନ୍ତା ।
ଏମନ୍ତ ସମୟେ ଜାମ୍ବବତୀ ଘେନି ମିଳିଲେ ଆସି ଗୋବିନ୍ଦ
ସର୍ବଜନେ ମିଳି ଦରଶନ କଲେ ମନେ ହୋଇଣ ଆନନ୍ଦ ।
ଉଗ୍ରସେନ ରାଜା ସଭାମଧ୍ୟେ ଆସି ବିଜୟ କଲେ ଶ୍ରୀହରି
ଯେଉଁ ପରକାରେ ମଣି ଲଭ ହେଲା ସବୁ କହିଲେ ବିସ୍ତାରି ।
ପୁଣି ଦାମୋଦର ମଣି ଘେନି କରେ ସତ୍ରାଜିତକୁ ଡକାଇ
ତାର ହସ୍ତେ ମଣି ସମର୍ପଣ କରି ପୁରେ ପ୍ରବେଶିଲେ ଯାଇଁ ।
ସତ୍ରାଜିତ ମଣିରତ୍ନ କରେ ଘେନି ମନେ ପାଇ ଅନୁତାପ
ଶ୍ରୀକୃଷ୍ଣ ଚରଣେ ଅପରାଧ କରି ଅରଜିଲି ବହୁ ପାପ ।
ବିଷାଦିତ ଚିତ୍ତେ ଭାଳଇ ନିରତେ କେମନ୍ତେ ଏ ଦୋଷ ଯିବ
କି ଉପାୟ କଲେ ମୋହଠାରେ ଭଲେ ଗୋବିନ୍ଦ ପ୍ରସନ୍ନ ହେବ ।
ପୁଣି ବିଚାରଇ ମୋହର ଦୁହିତା ଅଛି ସ୍ତ୍ରୀରତ୍ନ ସାର
ମଣି ସହିତେ ତାହାକୁ ସମର୍ପିବି ଶ୍ରୀକୃଷ୍ଣ ପାଦପଦ୍ମର ।
ସେ କମଳାପତି ଅନ୍ୟେ ତାର ଶାନ୍ତ ନୋହିବ ମୁଁ ଜାଣେ ଭଲ
ଏ ଯେ ମଣିରତ୍ନ ମୋର କନ୍ୟାରତ୍ନ ସଙ୍ଗେ ଅଛି ଏମନ୍ତ୍ରଲ ।
ଏମନ୍ତ ବିଚାରେ ସତ୍ରାଜିତ ବୀର ମନରୁ ଭ୍ରାନ୍ତ ଛାଡ଼ିଲା
ଭଣ୍ଡାରରୁ ନାନା ଅଳଙ୍କାର ଆଣି ଦୁହିତାକୁ ସଜ କଲା ।
ଆବର କନ୍ୟାର କଣ୍ଠେ ମଣି ଭିଡ଼ି ମିଳିଲା ଶ୍ରୀକୃଷ୍ଣ ପାଶ
ବେନି କର ଯୋଡ଼ି ପାଦେ ପଡ଼ି ଉଠି କହଇ ମଧୁର ଭାଷ ।
ତୁ ନାଥ ଜଗତଜନଙ୍କ ଠାକୁର ମୁଁ ଅଟେ ତୋର କିଙ୍କର
ସତ୍ୟଭାମାକୁ ମୁଁ ତୋତେ ସମର୍ପିଲି ହୁଅ ତୁ ଏହାର ବର ।
ତାର ବାକ୍ୟ ଶୁଣି ଦେବ ଚକ୍ରପାଣି ହେଲେ ଆନନ୍ଦିତ ଚିତ୍ତ
କମଳାର ଅଂଶେ ଅବତାର ଜାଣି ବିବାହ କଲେ ତ୍ୱରିତ ।

ଏଥୁ ଅନନ୍ତରେ ଅକ୍ରୂର ସଙ୍ଗରେ କୃତବର୍ମା ଶତଧନୁ
ତିନିଜଣ ମିଳି ବିଚାର କରନ୍ତେ ଅସ୍ତାଚଳେଗଲେ ଭାନୁ ।
ଶତଧନୁ ବୋଲେ ସାଜ ସତ୍ରାଜିତ କେମନ୍ତ ଅନ୍ୟାୟ କଲା
ତାହାର କନ୍ୟାକୁ ବିବାହ ଦେବାକୁ ସତ୍ୟବାକ୍ୟ ଦେଇଥିଲା ।
ଏବେ ମୋତେ ସତ୍ୟଭାମାକୁ ନ ଦେଇ ଦେଲା ନେଇ ଗୋବିନ୍ଦକୁ
କି ଉପାୟ କରି ମଣି ନେଇ ତାର ଆବର ନାଶିବି ତାକୁ ।
ଅକ୍ରୂର ବୋଲଇ ଶୁଣି ଶତଧନୁ ଜୀବନ୍ତେ ସେ ମଣିବର
କେବେହେଁ ପ୍ରାପତ ନ ହୋଇବ ତୋତେ ଉପାୟ ଥିଲେ ତୁ କର ।
ଏମନ୍ତ ବିଚାର କରି ତିନିଜଣ ଗଲେ ଯେ ଯାହା ଭୁବନ
ରହେ ଶତଧନୁ ଅସ୍ଥିର ହୋଇଲା କୋପେ କମ୍ପେ ଘନ ଘନ ।
ବହି ପିନ୍ଧି ବେଗେ ବାହାର ହୋଇଣ ହସ୍ତରେ ଧରିଣ ଖଣ୍ଡା
ରହେ ସତ୍ରାଜିତ ଗୃହରେ ମିଳିଲା କୋପେ ହୋଇଣ ପ୍ରଚଣ୍ଡା ।
ନିକଟରେ ଥିଲା ତାହାର ବନିତା ଭୟେ ଗୋଳଧ୍ୱନି କଲା
ନିଦ୍ରାରେ ଅଚେତ ଥିଲା ସତ୍ରାଜିତ ଛେଦିଲା ତାହାର ଗଳା ।
ପଶୁପ୍ରାୟେ ବଧ କରିଣ ତାହାକୁ ହରିଲା ଅମୂଲ୍ୟ ମଣି
ନିଜ ଭୁବନକୁ ଗମନ କରନ୍ତେ ବେଗେ ପାହିଲା ରଜନୀ ।
ପିତାର ମରଣ ସତ୍ୟଭାମା ଶୁଣି ବଳାତେ ଭୂମିରେ ପଡ଼ି
ଶୋକରେ ଅସ୍ଥିର ହୋଇ ଭାମାବର କରଯୁଗ ଶିରେ ତାଡ଼ି ।
ପିଅର ବୋଲିଣ କାନ୍ଦଇ ବିକଳେ ପୁଣି ହୁଏ ଅଚେତନ
ପଡ଼ଇ ଗଡ଼ଇ ବାତୁଳୀଙ୍କ ପ୍ରାୟେ ମୁଖୁଁ ନ ସ୍ଫୁରେ ବଚନ ।
ପିତାର ମରଣେ କୋପେ ସତ୍ୟଭାମା ମିଳି ହସ୍ତିନା ନଗର
କୃଷ୍ଣମୁଖ ଚାହିଁ ଶିରେ କର ଦେଇ କହେ ପିତା ସମାଚାର ।
ହେ ନାଥ ତୁମ୍ଭର ଶତଧନୁ ମୋର ପିଅରକୁ ନାଶ କରି
ମଣି ନେଇ ପୁଣି ପଳାଇ ଲୁଚିଛି ଆପଣାର ନିଜପୁରୀ ।

ସତ୍ୟଭାମା ମୁଖୁଁ ଏମନ୍ତ ଶୁଣିଣ ଚକିତରେ ଦାମୋଦର
ହରି ହଳଧର କପଟେ କାନ୍ଦନ୍ତି ନୟନୁ ବୁହାଇ ନୀର ।
କୋପଭରେ ହୋଇ ସତ୍ୟଭାମା ଘେନି ରଥେ ଚଳେ ରାମହରି
ବୋଲଇ ଦାରୁକ ଦ୍ୱାରକାକୁ ରଥ ବାହ ତୁମ୍ଭେ ବେଗକରି ।
ରାମ ଗୋବିନ୍ଦର ଆଗମନ ବାର୍ତ୍ତା ଭୟେ ଶୁଣି ଶତଧନୁ
କରେ ମଣି ଘେନି ପୁରୁଁ ବାହାରନ୍ତେ ଆକୁଳେ କମ୍ପଇ ତନୁ ।
ସଭୟେ କୃତବର୍ମ୍ମାର ପୁରେ ମିଳି ବଚନ କହେ ଆଶ୍ୱାସି
ସତ୍ରାଜିତ ମୁଣ୍ଡ ହାଣି ମଣିରତ୍ନ ଆଣିଲି ତା ପୁରେ ପଶି ।
ତୋର ବଚନେ ମୋ ମତିଭ୍ରମ ହେଲା କଲି ଏଡ଼େ ବଡ଼ କର୍ମ ।
ଆଗ ପଛକୁ ମୁଁ ବିଚାର ନ କଲି ଗୁଡ଼ିଲକ ମୋତେ ଧର୍ମ ।
ଏବେ କେଉଁପରି ରକ୍ଷା ହେବ ପ୍ରାଣ ଉପାୟ ତାହାର କହ
ମଣି ନେଇ ଏବେ ଶରଣ ପଶୁଛି ତୁ ମୋହର ପକ୍ଷ ହୁଅ ।
ଶତଧନୁଠାରୁ ଏମନ୍ତ ବଚନ କୃତବର୍ମ୍ମା ବୀର ଶୁଣି
ରାମକୃଷ୍ଣଙ୍କର ଦ୍ରୋହକାର୍ଯ୍ୟ କଲୁ କେ ହୋଇବ ପକ୍ଷ ଜାଣି ।
ଯାର କୋପେ କଂସ ସବଂଶରେ ନାଶ ହୋଇଗଲା ଜରାସନ୍ଧ
ରବିତଳେ ତାର ବଇରୀ ହୋଇଣ କେ ଅବା କରିବ ଦ୍ୱନ୍ଦ୍ୱ ।
ଏମନ୍ତ ନିରସ ବଚନ ତାଠାରୁ ଶୁଣି ବେଗେ ଚଳିଗଲା
ଜୀବନ ବିକଳେ ଅକ୍ରୂର ଗୃହରେ ଗୁପ୍ତେ ପ୍ରବେଶ ହୋଇଲା ।
ତୋର ବୋଲେ ମୁଁ ସତ୍ରାଜିତ ମାଇଲି କୋପିଛନ୍ତି ଚକ୍ରଧର
ପାଦ ଧରି ତାର ବୋଲଇ ମୁଁ ଏବେ ଶରଣ ଗଲି ତୋହର ।
ଅକ୍ରୂର ବୋଲଇ ଗୋବିନ୍ଦର ଗତି ନାହିଁ କି ତୁମ୍ଭ ଶୁଣିଣ
ଏବେ ମଣି ନେଇ ରାମ କୃଷ୍ଣ ପାଶେ ତୁମ୍ଭ ପଶ ଯା ଶରଣ ।
ବାଳୁତ ବୟସେ କି କି ନ କଲେ ସେ ଇନ୍ଦ୍ର ତୁଲେ ବାଦ କରି
ଅଙ୍ଗୁଳି ଅଗ୍ରରେ ଛତ୍ର ପରକାରେ ଧରି ଗୋବର୍ଦ୍ଧନ ଗିରି ।

ସୃଜନ୍ତି ପାଳଇ ପୁଣି ସଂହାରଇ ସଂସାର ଯା ଖେଳଘର
ଅନନ୍ତ ମହିମା ଅଛଇ ଯାହାର ତାକୁ ମୋର ନମସ୍କାର ।
କାର ବଳେ ତୋତେ କେ ରଖି ପାରିବ କୋପିଛନ୍ତି ନାରାୟଣ
ପଳାଇ ହସ୍ତିନାପୁରେ ଯୁଧିଷ୍ଠିର ପାଦେ ତୁ ପଶ ଶରଣ ।
ଅକ୍ରୂର ନିଷ୍ଠୁର ବାକ୍ୟେ ଶତଧନୁ ବେଗେ ତହୁଁ ପଳାଇଲା
ହସ୍ତିନାକୁ ଯାଇ ଯୁଧିଷ୍ଠିରଙ୍କ ପାଶେ ସବୁ ବୃତ୍ତାନ୍ତ କହିଲା ।
ଶତଧନୁ ବାକ୍ୟ ଶ୍ରବଣେ ଯୁଧିଷ୍ଠିର ଦେବ ବୋଲନ୍ତି ତକ୍ଷଣେ
ତୁ ଯେବେ ଜଗନ୍ନାଥଙ୍କ ଶତ୍ରୁ ଅଟୁ କେହ୍ନେ ରଖିବୁ ଶରଣ ।
ତାହାର ବିକଳ ଦେଖି ସହଦେବ କରେ ତାହାକୁ ସାନ୍ତ୍ୱନା
ପ୍ରାଣ ରକ୍ଷା ପାଇଁ ଉପାୟେକ ଅଛି ଅର୍ଜୁନେ କର ପ୍ରାର୍ଥନା ।
ଶ୍ରୀକୃଷ୍ଣଙ୍କ ଶତ୍ରୁ ଅଟୁ ତୁ ଯଥାର୍ଥ ସେ ଯେ ହରି ପଞ୍ଚଭୂତ
ତାଙ୍କ ଚରଣେ ତୁ ଶରଣ ପଶିବୁ ରକ୍ଷା କରିବେ ଯେ ପାର୍ଥ ।
ସହଦେବ ବାଣୀ ଶତଧନୁ ଶୁଣି ବୋଲେ ଯେବେ କଲ ଦୟା
ବାସବନନ୍ଦନ କେଉଁଠାରେ ଛନ୍ତି କହିବାକ ଗୁଡ଼ ମାୟା ।
ଶତଧନୁ ବାଣୀ ଶୁଣି ମନ୍ତ୍ରିମଣି ବୋଲେ ଶୁଣ ବୀରବର
ବୀର ଫାଲ୍‌ଗୁନ ବିଜେ କରିଛନ୍ତି ମଣିଭଦ୍ରା ପର୍ବତର ।
ସହଦେବଠାରୁ ସମାଚାର ପାଇ ଜୀବନ ବିକଳେ ଗଲା
କେତେହେଁକ ଦୂରେ ଗମନ କରନ୍ତେ କିରୀଟ ନୃପେ ଭେଟିଲା ।
କର ଯୋଡ଼ି ତାର ଅଗ୍ରତେ କହଇ ତ୍ରାହି କର ବୀରେ ମୋତେ
ଗୋବିନ୍ଦଙ୍କ ଭୟେ ତୋଠାକୁ ଆଇଲି ଶରଣ ରଖ ତୁ ମୋତେ ।
ତାହାର ବଚନେ କିରୀଟ ରାଜନ ବୋଲେ କୃଷ୍ଣ ଶତ୍ରୁ ତୁହି
ତିନିପୁର ଲୋକେ ଏକତ୍ର ହୋଇଲେ ରଖି ନ ପାରିଲେ କେହି ।
ବ୍ରହ୍ମାଣ୍ଡକରତା ଗତି ମୁକ୍ତିଦାତା ତାଙ୍କ ସଙ୍ଗେ ବାଦ କଲୁ
ଜାଣୁ ଜାଣୁ ଅଗ୍ନିଶିଖାରେ ପତଙ୍ଗ ପରି ତୁହି ନାଶ ଗଲୁ ।

କହନ୍ତି ରାଜନଠାରୁ ଏ ବଚନ ଶୁଣି ବେଗେ ଶତଧନୁ
ଗହନ ବନକୁ ପଳାଇଣ ଗଲ୍ ଭୟେ କମ୍ପେ ତାର ତନୁ ।
ପୁଣି କେତେଦୂର ଯାଆନ୍ତେ ଦେଖିଲ୍ ଏକ ରାକ୍ଷସ ନୃପତି
ତା ପାଶେ ପ୍ରବେଶି ଝଟତି ବୋଲଇ ଶୁଣିମା ମୋର ବିନତି ।
ସଂସାର ମଧ୍ୟରେ ବୀରଙ୍କ ଉପରେ ଅଟୁ ତୁହି ବଳୀୟାର
ତୋହର ଚରଣେ ଶରଣ ପଶୁଛି ଭୟୁ ମୋତେ ସାହ୍ୟକର ।
ବୋଲେ କୃତକେଶୀ ମନ୍ଦେ ମନ୍ଦେ ହସି ତୋର ନାମ ଅଟେ କସ
କାହାର ଭୟରେ କାତର ହୋଇଣ ଅଇଲୁ ତୁ ମୋର ପାଶ ।
ଅସୁର ବଚନେ ଆଶ୍ୱାସ ପାଇଣ ପୁଣ ବୋଲେ ଶତଧନୁ
ଦ୍ୱାରକାରେ ଘର ବଇଶ୍ୟ ମୋହର ଅଟେ ବସୁଦେବସୂନୁ ।
ଶୁଣି ରକ୍ଷସାଇଁ ବୋଲେ ମୋ ପାଶରେ ରହ ତୁ ଦେଲି ଅଭୟ
ସଂଗ୍ରାମେ ଅଦ୍ଭୁତ ବ୍ୟୂହ ରଚି ତୋର ଶତ୍ରୁକୁ କରିବ କ୍ଷୟ ।
ଏମନ୍ତ ବୋଲିଣ ଶକଟ ନାମେଣ ବ୍ୟୂହ ଏକ ନିର୍ମାଣିଲ
ଦ୍ୱାର ଦ୍ୱାର ଷୋଳ କନ୍ଧ ଷୋଳ ଠଣା ତହିଁ ପାଶରେ ରଖିଲ ।
ତାର ଦେହେ ପଦ୍ମବ୍ୟୂହ ପାତି ପୁଣି ପଦ୍ମେକ ସେନା ବଢ଼ାଇ
ପୁଣି ତା ମଧ୍ୟରେ ସୂଚିବ୍ୟୂହ କଲ୍ ଭେଦି ନ ପାରିବ କେହି ।
ତାର ଚତୁର୍ଦ୍ଦିଗେ ଅସ୍ତ୍ର ଶସ୍ତ୍ରମାନ ବେଗେ କଲ୍ ସଂସ୍ଥାପନ
ତାର ମଧ୍ୟଦେଶେ ଶତଧନୁ ନେଇ ରଖିଲକ ନୃପବର ।
ପବନ ତପନ ଯମ ବୈଶ୍ୱାନର ବ୍ରହ୍ମା ବିଷ୍ଣୁ ମହେଶ୍ୱର
ତେତିଶକୋଟି ଦେବ ଆଦି ମିଳିଣ ଆସିଲେ ଦେବ ସଂହାର ।
ଏମନ୍ତ ପ୍ରକାରେ ସୂଚିବ୍ୟୂହ ମଧ୍ୟେ ରହି ଶତଧନୁ ତୋଷ
ମନରେ ତାହାର ଭୟକୁ ଉପେକ୍ଷି କରେ ବହୁ ପରିତୋଷ ।
ଏଥୁ ଅନନ୍ତରେ ଶୁଣ ସମାଚାର ରାମକୃଷ୍ଣ ବେନିଭାଇ
ନନ୍ଦିଘୋଷ ରଥେ ଚଢିଣ ଦ୍ୱାରକାପୁରେ ପ୍ରବେଶିଲେ ଯାଇ ।

ଏମନ୍ତ ସମୟେ ଦ୍ୱାରକାବାସୀଏ ବୋଲନ୍ତି ହେ ଯଦୁବୀର
ତୁମ୍ଭର ଭୟରେ ଅଶ୍ୱପୃଷ୍ଠେ ଚଢି ପଳାଇଲା ଗୁଣ୍ଡ ପୁର ।
ଏକଥା ଶ୍ରବଣେ ଶ୍ରୀକୃଷ୍ଣଙ୍କ ମନେ ଉପୁଜିଲା ବଡ କ୍ରୋଧ
ଯହିଁ ତହିଁ ଲୁଚିଥିଲେ ଶତଧନ୍ୱା ନିଶ୍ଚୟେ କରିବି ବଧ ।
ଏମନ୍ତ ସମୟେ ଏକ ଦୂତ ଆସି ଜଣାଏ ଗୋବିନ୍ଦ ପାଶ
ତୁମ୍ଭର ଭୟରେ ଶତଧନ୍ୱା ଯାଇ ରହିଛି ହସ୍ତିନା ଦେଶ ।
ଏସନକ ବାଣୀ ଦୂତମୁଖୁଁ ଶୁଣି ବୀରବେଶେ ଚକ୍ରଧର
ଦାରୁଣା ଭୁବନେ ମିଳିଲେକ ଯାଇ ଯୁଧିଷ୍ଠି ରାଜା ପାଶର ।
ଶ୍ରୀକୃଷ୍ଣଙ୍କୁ ଦେଖି ଯୁଧିଷ୍ଠି ଆନନ୍ଦେ ବୋଲନ୍ତି ଆହେ ଗୋବିନ୍ଦ
କେଉଁ କାର୍ଯ୍ୟ ପାଇଁ କ୍ରୋଧେ ଆସିଅଛ କହ ପ୍ରଭୁ ଆନନ୍ଦକନ୍ଦ ।
ବୋଲନ୍ତି ଶ୍ରୀହରି ସତ୍ରାଜିତେ ମାରି ଶତଧନ୍ୱା ତୁମ୍ଭ ପୁର
ଆସି ଲୁଚିଥିବା ଦୂତଙ୍କ ମୁଖରୁ ଶୁଣିଲୁ ଏ ସମାଚାର ।
ତେଣୁ ମୁହିଁ ତୁମ୍ଭ ପୁରକୁ ଅଇଲି ତାକୁ ଖୋଜିବାର ପାଇଁ
କେଉଁଠାରେ ତାକୁ ଲୁଚାଇ ରଖିଛ ସତ୍ୱରେ ଦିଅ ଦେଖାଇ ।
ଗୋବିନ୍ଦ ବଚନ ଶୁଣି ଧର୍ମସୂନୁ ବୋଲନ୍ତି ଏଠାରେ ନାହିଁ
ତହୁଁ ନାରାୟଣ ହୋଇ କୋପମନା କାନନକୁ ଗଲେ ଧାଇଁ ।
ଗହନ ବନରେ ବୁଲନ୍ତି ଶ୍ରୀହରି ଶତଧନକୁ ଖୋଜନ୍ତି
ଏମନ୍ତ ସମୟେ ପଥର ମଧ୍ୟରେ ଭେଟ ଶବର ନୃପତି ।
ଦେଖିଣ ଶ୍ରୀହରି ପୁଚ୍ଛନ୍ତି ତାହାକୁ ଦେଖିଛ କି ଶତଧନ୍ୱା
ସେ ବୋଇଲା ପୂର୍ବଦିଗେ ପଳାଇଛି ଭୟେ କମ୍ପେ ତାର ତନୁ ।
ସେଠାରୁ ବାହନ ଚଳାଇଲେ ମୋହନ ହୃଦରେ ପୂରିଛି ରାଗ
ଗହନ ବନରେ କେଶରୀ ସମାନେ ଧାମନ୍ତି ହୋଇ ଉଦ୍‌ବେଗ ।
କିଛି ଦୂର ଯାନ୍ତେ ଦେଖିଲେ ବହୁତ ପୂରିଅଛନ୍ତି ଦନୁଜ
ମୋର ଶତ୍ରୁ ଶତଧନ୍ୱା ଦେଖିଛ କି ପୁଚ୍ଛିକଲେ ଦେବରାଜ ।

ଶ୍ରୀହରି ବଚନ ଶୁଣିବା ମାତ୍ରକେ କୋପେ ଅସୁର ସଜନ
ବୋଲେ ଶତ୍ରୁକୁ ତୁ ଖୋଜ ଆସିଅଛୁ ନାଶିବ ତୋର ଜୀବନ ।
ଏମନ୍ତ ବୋଲଣ ଦୈତ୍ୟଗଣେ ମିଳି କୃଷ୍ଣଙ୍କୁ ଯତ୍ନେଁ ବେଢ଼ିଲେ
ଶାର୍ଦ୍ଦୂଳ ସମ୍ମୁଖେ ଛେଳି ପଲ ପ୍ରାୟେ ଦନୁଜଦଳ ଦିଶିଲେ ।
କୋପେ ବ୍ରହ୍ମଣ୍ୟ ସୁଦର୍ଶନ ଚକ୍ର ପେଷି ନାଶନ୍ତି ଅସୁର
ସର୍ବବ୍ୟୂହ ଭେଦି ସୈନ୍ୟ ଶିର-ଚ୍ଛେଦ କରୁଛନ୍ତି ରଣଘୋର ।
ସେନାଗଣ ନାଶ ହେବାର ଦେଖିଣ କ୍ରୋଧେ ଦନୁଜ ଭୂପାଳ
କ୍ରୋଧେ ଅନ୍ଧ ହୋଇ ଶ୍ରୀକୃଷ୍ଣ ଅଙ୍ଗକୁ ଫିଙ୍ଗି ଦେଲାକ କୋଦାଳ
ତାହା ଦେଖି ହରି ବୈଷ୍ଣବୀ ଧନୁକୁ ଶୀଘ୍ର କଲେ ସୁମରଣ
ସ୍ମରିବା ମାତ୍ରକେ ଧନୁବର ଆସି ମିଳିଲା ତାଙ୍କ ଚରଣ ।
କରେ ଧନୁ ଧରି ଅର୍ଦ୍ଧଚନ୍ଦ୍ର ବାଣ ନେଇ ଗୁଣେ ବସାଇଲେ
କୋଦାଳ ସଙ୍ଗତେ ଅନେକ ଅସୁର ସେ ଶରେ ପ୍ରାଣ ହାରିଲେ ।
ପୁଣି ଦଇତ୍ୟାରି ମାଳଚକ୍ର ସ୍ମରି ତଆରି ବୋଲନ୍ତି ତାକୁ
ଶୀଘ୍ରେ ଗମନ କରି ଯାଇ ବଧ କର କୁଟକେଶୀ ଦଇତ୍ୟକୁ ।
ଶ୍ରୀହରି ଆଜ୍ଞାରେ ମାଳଚକ୍ର ଯାଇଁ ଅସୁର କଣ୍ଠେ ପଡ଼ିଲା
ଭୂରିତେ ତା ଶିର ବେନିଖଣ୍ଡ କରି ଚକ୍ରବର ଫେରିଗଲା ।
ଅସୁରର ପ୍ରାଣ ଛାଡ଼ି ଗଲାବେଳେ ରଡ଼ିଏ ଦେଲା ବିକଳେ
ଜୀବନ ହତାଶ ହୋଇଲେ ମୋହରି ଶତଧନୁ ମନେ ଭାଳେ ।
ନିଶ୍ଚୟ ମୋ ପ୍ରାଣ ନେବେ ନାରାୟଣ ଏମନ୍ତ ପାଞ୍ଚି ତା ମନ
ବିକଳେ ଧାଇଁଲା ଜୀବନର ଆଶେ ବ୍ୟୂହରୁ ଖସି ବହନ ।
ନିରାଶ୍ରୟ ହୋଇ ଗହନ ବନରେ ଯାଇଁ ସହଦେବ ବାଣୀ
ସ୍ମରଣ କରି ମଣିଭଦ୍ର ପର୍ବତେ ଯାଇଁ ଲୋଡ଼େ ଫାଲଗୁନି ।
ଦେଖିଲା ଗିରିର ଶୋଭା ମନୋହର ଗଲା ଶିଖରକୁ ଉଠି
ଯାଆନ୍ତେ ବାସବ ନନ୍ଦନକୁ ଦେଖି ସାଷ୍ଟାଙ୍ଗେ ପାଦରେ ଲୋଟି ।

ଜୟହୋଇ ପୁଣି କରଯୋଡ଼ି ସ୍ତୁତି କରଣ ବୋଲଇ ବାଣୀ
ଶରଣ ଗଲି ତୁମ୍ଭପାଦେ ଜୀବନ ରଖ କ୍ଷତ୍ରି ଚୂଡ଼ାମଣି ।
ଆହେ ଧନଞ୍ଜୟ ମୋର ପ୍ରାଣ ରଖ ମୋଠାରୁ ନାହିଁ କି ରକ୍ଷ
ତୁମ୍ଭ ପଦ୍ମପାଦେ ଶରଣ ପଶିଲି ହୁଅ ମୋର ସାହାପକ୍ଷ ।
ତାଠାରୁ ଏମନ୍ତ ଶୁଣି ଧନଞ୍ଜୟ କହନ୍ତ ତୁହି ନିର୍ଭୟ
ହୋଇ ଏଥିଁ ଥାଅ ଆଜହୁଁ ମୋଠାରେ ମନରୁ ଛାଡ଼ିଣ ଭୟ ।
ନ ଜାଣୁ କି ମୋର ବଳବୀର୍ଯ୍ୟ ତୁହି ସ୍ୱର୍ଗରେ ମୁଁ ଆଖଣ୍ଡଳେ
ଜିଣିଲି କବଚ ରୂପେ ପଞ୍ଚମାଥ ପାଶୁପତ ଦେଲେ ହେଳେ ।
ବ୍ରହ୍ମଶକ୍ତ ବଜ୍ରଶର ପରଶୁ ମୁଦ୍‌ଗର ଯେ ଦେବଶର
ଖାଣ୍ଡବ ଦହି ଆରୋଗ୍ୟ କରିବାରୁ ଦେଇଛନ୍ତି ବୈଶ୍ୱାନର ।
ଶରଣପଞ୍ଜର ବାନା ଅଟେ ମୋର ଡରୁ କପାଁ ତୁହି ଚତ୍ତେ
ତୋର ଶତ୍ରୁକୁ ଅବଶ୍ୟ ସଂହାରିବି ନିଶ୍ଚୟ ରଖିବି ତୋତେ ।
ଅର୍ଜ୍ଜୁନ ଆଶ୍ୱାସେ ଶତଧନୁ ତୋଷେ ରହିଲି ନିଶ୍ଚିନ୍ତ ହୋଇ
ଏଣେ କୃଷ୍ଣଚନ୍ଦ୍ର ଅସୁରଙ୍କୁ ନାଶି ଧାମନ୍ତ ଅଧିର ହୋଇ ।
ମଣିଭଦ୍ର ଗିରି ନିକଟେ ପ୍ରବେଶ ହୋନ୍ତେ ଅସ୍ତଗଲେ ଭାନୁ
ଦେଖିଲେ ଶବର ପାଶରେ ବସିଛି ନିର୍ଭୟରେ ଶତଧନୁ ।
ଅନ୍ଧାରେ ପାର୍ଥଙ୍କୁ ଚହ୍ନି ନ ପାରିଣ ବୋଲନ୍ତ ଆରେ ଶବର
କେଉଁ ସାହସରେ ନିର୍ଭୟ ମନରେ ରଖିଛୁ ଶତ୍ରୁକୁ ମୋର ।
ହିତକଥା ଶୁଣ ଶତ୍ରୁକୁ ମୋହର ଛାଡ଼ ମୁଁ ତାହାର ପ୍ରାଣ
ଘେନିବି ନିଶ୍ଚୟ ତୁ କଲେ ସାହାଯ୍ୟ ଅନିଷ୍ଟ ହୋଇବ ଜାଣ ।
ଅନେକ ପ୍ରତିଜ୍ଞା କରିଣ ଶ୍ରୀହରି ଡାକନ୍ତି ଆରେ ଶବର
ଜୀବନର ଆଶା ଥିଲେ ବେଗ ହୋଇ ପଳାଇ ଯା ନିଜପୁର ।
ଶ୍ରୀହରିଙ୍କ ଡାକ ନ ଶୁଣି ଅର୍ଜ୍ଜୁନ ବଧିର ପ୍ରାୟେ ହୋଇଲେ
ତା ଦେଖି ଗୋବିନ୍ଦ ଆକର୍ଷିଣ ଧନୁ ତୀକ୍ଷଣବାଣେକ ବିନ୍ଧିଲେ ॥

କଣ୍ଟିତ ନାଗର ପେଷି ପାର୍ଥଙ୍କର ତାହା କାଟିଲେ ବନ୍ଦନ
ଶ୍ରୀକୃଷ୍ଣ ହୃଦକୁ ଲକ୍ଷ୍ୟକରି ଶର ଛନ୍ଦୁଛନ୍ତ ଘନ ଘନ ।
ପୁଣି ପାର୍ଥଙ୍କର ଶରରେ ସୁମରି ବନ୍ଧିଲେ ପବନ ଶର
ବଜ୍ରବାଣ ଯେନି ତାହା ନିବାରିଲେ କୋପେ ପ୍ରଭୁ ଚନ୍ଦ୍ରଧର ।
ବାବଲଶରକୁ ଯେଜାଣ ଗୋବିନ୍ଦ ମନ୍ତ୍ରିଣ ଗୁଣେ ବସାଇ
ଧନୁ ଓଙ୍କାରିଣୀ ଛଡ଼ାଇ ପେଷିଲେ ଶବରକୁ ନାଶ ହୁଅ ।
ବ୍ରହ୍ମଶରକରେ ବାବଲ ଶରକୁ ଯତ୍ନେ କାଟିଲେ ଅର୍ଜୁନ
ତାହା ଦେଖି କ୍ରୋଧେ ବାଛି ବାଛି ଶର ଛନ୍ଦନ୍ତ ନନ୍ଦନନ୍ଦନ ।
ପୁଣିହିଁ ଶ୍ରୀକୃଷ୍ଣ ବେଗେ ବ୍ରହ୍ମାନଳ ଶରକୁ ଧନୁରେ ଧରି
ମନ୍ତ୍ରିଣ ପେଷନ୍ତ ଶବରକୁ ଯାଇ ମାରି ଆସ ବେଗକରି ।
ଶୁଣି ମହାଶର ହୋଇ ଭୟଙ୍କର ଧରି ପ୍ରଳୟ ମୂରତି
କ୍ରମେ କ୍ରମେ ଆସି ପ୍ରବେଶ ହୋଇଲା ବାସବନନ୍ଦନ କତି ।
ଦେଖିଣ କପାଳୀ ମନ୍ଦେ ଅଳ୍ପ ହସି ଶକ୍ତି ଯେନି ନିବାରିଲେ
ଧନ୍ୟରେ ଶବର ତୋର ଧନୁପଣ ବୋଲି ମନେ ପ୍ରଶଂସିଲେ ।
ଧନ୍ୟ ତୋ ଜନମ ଧନ୍ୟ ତୋ ପିଅର ଧନ୍ୟ ତୋର ଅସ୍ତ୍ରଶିକ୍ଷା
ବୀରଙ୍କ ମଧ୍ୟରେ ଅଗ୍ରଗଣ୍ୟ ତୁହି ଧନ୍ୟ ତୋର ଗୁରୁଦୀକ୍ଷା ।
ମନରେ ଏମନ୍ତ ପ୍ରଶଂସି ଗୋବିନ୍ଦ ବୈଷ୍ଣବ ଶରକୁ ଧରି
ମନେ ଅଭିଷେକ ଗୁଣରେ ବସାଇ ଛାଡ଼ିଦେଲେ ବେଗକରି ।
ଆକାଶମାର୍ଗରେ ଉଡ଼ିଆସେ ଶର ଦେଖିଣ ତାହା କପାଳୀ
ଅଗ୍ନି ସୁମରଣ ବୈଷ୍ଣବ ଚକ୍ରରେ ବେଗେ ଦେଲେ ତାହା କାଟି ।
କୋପରେ ଅର୍ଜୁନ ଅର୍ଦ୍ଧଚନ୍ଦ୍ର ବାଣ ଗୁଣେ ନେଇ ବସାଇଲେ
ମୋହନର ଶତ୍ରୁକୁ ବେଗେ ନାଶ କର ବୋଲି ମନ୍ତ୍ରି ଛାଡ଼ିଦେଲେ ।
ଦେଖି କୃଷ୍ଣଚନ୍ଦ୍ର ଧନୁ ଧରି କରେ ଶର କଲେ ନିବାରଣ
ଧନ୍ୟରେ କପଟ ବୋଲିଣ ପ୍ରଶଂସା କରନ୍ତି ତାକୁ ମୋହନ ।

ଏହି ପରକାରେ ଶ୍ରୀକୃଷ୍ଣ ଅର୍ଜ୍ଜୁନ ଯୁଦ୍ଧ କରନ୍ତି ବହୁତ
କେ ବର୍ଷଇ ଅଗ୍ନି କେ ବର୍ଷେ ବାଣୀ ପୁଣି କେ ବର୍ଷେ ମାରୁତ ।
ଏକକୁ ଆରେକ ବଳଷ୍ଟ ଅଟନ୍ତି କେହି ନୁହନ୍ତି ନିଊନ
ବେନିଜନ ମିଳି ସମର କରନ୍ତି ବହିଗଲା ସପ୍ତଦିନ ।
ଗର୍ଜ୍ଜିଣ ଅର୍ଜ୍ଜୁନ ମେଘାଶର ଘେନି ଶ୍ରୀକୃଷ୍ଣ ଉପରେ ପେଷି
ବଜ୍ରଶକ୍ତି ଶର ଘେନିଣ ଶ୍ରୀକୃଷ୍ଣ ବହନ ଦେଲେକ ନାଶି ।
କେଶବ ବୋଲନ୍ତି ଶୁଣରେ ଶବର ନିଶ୍ଚେ ନେବି ତୋ ଜୀବନ
ନୋହିଲେ ମୋହର ଶତ୍ରୁକୁ ଛାଡ଼ିଣ ପଳାଇ ଯାଅ ବହନ ।
ଅର୍ଜ୍ଜୁନ ବୋଲନ୍ତି ଶୁଣରେ ପାମର ହୋଇଅଛୁ କିରେ ବାଇ
ସ୍ଥିର ହୋଇ ତୁ ମୋ ସଙ୍ଗେ ଯୁଦ୍ଧକର ବ୍ରତର ଦେବି ଛଡ଼ାଇ ।
ଏମନ୍ତ କହିଣ କୋପେ ବେନିଜନ କରନ୍ତି ଘୋର ସମର
ନିଶଘାତ ନାମେ ଶର ଏକ ଘେନି ବିନ୍ଧନ୍ତେ ଅର୍ଜ୍ଜୁନ ବୀର ।
ସେ ଶର ଆସନ୍ତେ ଘୋର ଅନ୍ଧକାର ନିଶି ଦିଶଇ ଆଲୋକ
ଆକାଶମାର୍ଗରେ ଅର୍ଜ୍ଜୁନେ ପ୍ରଶଂସା କରୁଛନ୍ତି ଦେବଲୋକ ।
ଖରେ ଆସି ଶର ଶ୍ରୀକୃଷ୍ଣ ହୃଦରେ ବାଜିଲା ଯେ ବଜ୍ରପରି
ବେନି ଘଡ଼ିଯାଏ ଅଜ୍ଞାନ ହୋଇଣ ପଡ଼ିଗଲେ ଯେ ଶ୍ରୀହରି ।
ଚେତାପାଇ ପୁଣି ଶାରଙ୍ଗ ଧନୁକୁ ଚିନ୍ତାକଲେ ଭବଗ୍ରାହୀ
ସୁମରନ୍ତେ ଧନୁ ଶ୍ରୀକୃଷ୍ଣଙ୍କ ହସ୍ତେ ଉପଗତ ହେଲା ଯାଇଁ ।
ହସ୍ତେ ଧନୁ ଧରି ମହାକାଳ ନାମେ ବାଣ ପେଷି ଜନାର୍ଦ୍ଦନ
ମୋହର ଶତ୍ରୁକୁ ରକ୍ଷା କରୁଛୁ ସେ ବଧ ତାହାର ଜୀବନ ।
ମହା ବଳସ୍ୱାର ବଷ୍ଟୁଣରେ ଆସିବାର ଦେଖି ବୀର ପାର୍ଥ
ପାଶୁପତ ନାମେ ବାଣକୁ ଅର୍ଜ୍ଜୁନ ପେଷି ବୋଧିଲେ ତୁରିତ ।
ଶରମାନ ବ୍ୟର୍ଥ ଦେଖି ଜଗନ୍ନାଥ ମନେ ମହାକୋପ ବହି
ନିର୍ଘାତ ନାମେଣ ଶର ଘେନି ହସ୍ତେ ଗୁଣେ ବସାଇଲେ ନେଇ ।

ତପନ ସମାନ ଶର ଆସିବାର ଦେଖି ବାସବସନ୍ତ
ଭୈରବଠାକୁର ଗୁଣରେ ବସାଇ ସେ ଶର ଦେଲେ ନିପାତ ।
ଏହି ପରକାରେ ବେଳ୍ରୁବେଳ ଯୁଦ୍ଧ ହୋଇଲା ଯେ ଅପ୍ରମିତ
ଦୁଇଜଣ ମିଳି ସମର କରନ୍ତି ଦେବଙ୍କୁ ଅଟେ ଅଦ୍ଭୁତ ।
ନାନା ପରକାରେ ବାଛି ବାଛି ଅସ୍ତ୍ର ପେଷୁଛନ୍ତି ବେନିଜଣ
ଶରମାନଙ୍କରେ ଆଘାତ ଶବ୍ଦେ କମ୍ପୁଅଛି ତ୍ରିଭୁବନ ।
ପୁଣି ଜଗନ୍ନାଥ ହୋଇ ବାଗାନ୍ୱିତ କାଳାନଳ ଶକ୍ତି ପିଟି
ଚନ୍ଦ୍ରହାସ୍ୟ ଖଡ୍‌ଗ ଧରି କୁନ୍ତୀସୁତ ତାହା ପକାଇଲେ କାଟି ।
ଦେଖି କ୍ରୋଧହୋଇ ବ୍ରହ୍ମାଣ୍ଡ ଗୋସାଇଁ କୌମୋଦକି ଗଦାବରେ
ବୁଲାଇ ପିଟନ୍ତେ ଅଗ୍ନି କି ସୁମରି ଧଇଲେ ତା ପାର୍ଥ କରେ ।
ଆଶ୍ଚର୍ଯ୍ୟ ହୋଇଣ ଶ୍ରୀନନ୍ଦନନ୍ଦନ ପ୍ରଶଂସନ୍ତି ରେ ଶବର
ଧନ୍ୟ ଗର୍ଭଧାରୀ ଅଟଇରେ ଧନ୍ୟ ଧନ୍ୟ ତୋହର ପିଅର ।
ଏମନ୍ତ ବୋଲିଣ ବସ୍ତ୍ରଶକ୍ତି ଧରି ପେଷିଦେଲେ ଜଗନ୍ନାଥେ
ଅଗ୍ନି ସୁମରିଣ ବୀର ଅରଜୁନ ଧଇଲେ ତା ନିଜହସ୍ତେ ।
ଶକ୍ତି ବ୍ୟର୍ଥ ଦେଖି ଭସ୍ତେ ପଦ୍ମଆଖି ମନେ କରନ୍ତି ବିଚାର
ଯେତେ ଶର ମୋର ସବୁ ବ୍ୟର୍ଥ କଲା ଅଟେ କେ ଏ ମାୟାଧର
ଏମନ୍ତ ବିଚାରି ଦେବ ଦଇତ୍ୟାରି ଡାକନ୍ତି ଆରେ କିରାତ
କି ନାମ ତୋହର କାହାର କୁମର ଅଟୁ କେଉଁ କୁଳେ ଜାତ ।
ମୋହର ସଙ୍ଗତେ ସମକକ୍ଷ ହୋଇ ବହୁତ କଲୁ ସମର
ଏବେ ଏକ ବାଣ ପେଷୁଛି ରେ ପୁଣି ଦେଖି ସମ୍ଭାଳ ଏଥର ।
ଏତେ କହି ମନଭେଦୀ ଶର ଘେନି ତଥାରି ତାକୁ ପେଷିଲେ
ଦୃଷ୍ଟିମାତ୍ରେ ବୈଶ୍ୱାନର ଧ୍ୟାୟି ପାର୍ଥ ବେନିକରେ ତା ଧଇଲେ ।
ସ୍ୱରେ ପାର୍ଥବୀର ବୋଲନ୍ତି ଶବର ତୋର କେଉଁ କୁଳେ ଜନ୍ମ
ଯେଉଁ ଶରମାନ କଲୁ ଅବତାର କାହୁଁ ପାଇଲୁ ଏମାନ ।

ଯେତେ ଶସ୍ତ୍ରମାନ ବନ୍ଧିଲୁ ତୁ ମୋତେ ସେ ସବୁ କଲି ନିପାତ
ଏବେ ମୂର୍ତ୍ତି ଏକ ଶର ବାନ୍ଧିଅଛୁ ସମ୍ଭାଳ ଏବେ ତୁରିତ ।
ଏମନ୍ତ ବୋଲିଣ ତୂଣୀରୁ ବହନ କାଢ଼ି ସମ୍ମୋହନ ଶର
ଗୁଣରେ ବସାଇ ବେଗେ ପେଷି ଦେଲେ ସୁମରିଣ ବୈଶ୍ୱାନର ।
ଆଦର ଶରକୁ ପ୍ରାର୍ଥନା କରିଣ କହନ୍ତି ବୀର ଅର୍ଜ୍ଜୁନ
ତୋତେ ଅଗ୍ନିଦେବ ସମର୍ପି ଅଛନ୍ତି ମୋତେ ହୋଇଣ ପ୍ରସନ୍ନ ।
ତୁ ଯାଇ ତୁରିତେ ଶବରର ଗାତ୍ରେ ରୋମେ ରୋମେ ଭେଦଯାଇ
ଜୀବନରେ ତାକୁ ବିନାଶ ନ କରି ପଡ଼ିଥାଉ ମୋହ ହୋଇ ।
ଆଜ୍ଞା ପାଇ ଶର ପବନଠୁଁ ଖରେ ପଡ଼ିଲା ଶ୍ରୀକୃଷ୍ଣ ଅଙ୍ଗେ
ଝିଙ୍କପକ୍ଷୀ ପ୍ରାୟେ କଣ୍ଟକ ଦିଶିଲା ଶର ଭେଦିଣ ସର୍ବାଙ୍ଗେ ।
ଅଚେତନ ହୋଇ ଅବନୀ ଉପରେ ପଡ଼ିଗଲେ ଦେବରାୟ
ତା ଦେଖି ପର୍ବତୁଁ ଓହ୍ଲାଇ ସନ୍ନିଧେ ପ୍ରବେଶିଲେ ଧନଞ୍ଜୟ ।
ଦେଖିଲେ ତାଙ୍କର ନୀଳ କଳେବର ମୁଖ ନିଷ୍କଳଙ୍କ ଶଶୀ
ପରାୟେ ଉଜ୍ଜ୍ୱଳ ଆଦର ହୃଦରେ କଉସ୍ତୁଭ ମଣି ଦିଶି ।
ଶିର ହାଣିବାକୁ ହସ୍ତେ ଖଡ୍ଗ ଥିଲା ଦେଖି ନ ବଳିଲା ଚିତ୍ତ
ସନ୍ଦେହେ ଶତଧନୁକୁ ପାଶେ ରହି ପୁଚ୍ଛିଲେ ସର୍ବ ଉଦନ୍ତ ।
କାହାର ଭୟରେ ମୋର ସନ୍ନିଧିରେ କୃଷ୍ଣ ପଶିଲୁ ଶରଣ
ବିସ୍ତାରିଣ ସର୍ବ କଥା କହ ମୋତେ କରିବ ତାହା ଶ୍ରବଣ ।
ଅର୍ଜ୍ଜୁନ ବଚନେ ଶତଧନ୍ୱ ଭୟେ କହେ ହୋଇ ବେନିକର
ସେ ବୃତ୍ତାନ୍ତ ଏବେ କହୁଛି ଶୁଣିବା ହେଉ ଶରଣପଞ୍ଜର ।।
ସତ୍ରାଜିତ ସୂର୍ଯ୍ୟଦେବ ସେବାକରି ପାଇଥିଲେ ରତ୍ନମଣି
ତାକୁ ନାଶ କରି ସ୍ୟମନ୍ତକ ମଣି ରୁକ୍ମିଣୀ ଆଣିଲି ପୁଣି ।
ଶୁଣି ନରହରି ମହାକ୍ରୋଧ କରି ମୋତେ ନାଶିବାର ଅର୍ଥେ
ଗୋଡ଼ାଇଲେ ଯହୁଁ ତାହାଙ୍କ ଭୟରେ ଶରଣ ଗଲି ମୁଁ ତୋତେ ।

ମୋର ପୂର୍ବ ପୁଣ୍ୟବନ୍ତୁ ତୋ ଚରଣ ମୋତେ ଯେ ଭେଟହୋଇଲା
ତୋର ସଙ୍ଗେ ଯୁଦ୍ଧକରି ପଡ଼ିଛନ୍ତି ପ୍ରତ୍ୟକ୍ଷରେ ନନ୍ଦବଳା ।
ଶତଧନୁଠାରୁ ଏସନ ବଚନ ଶୁଣିକରି ବୀର ପାର୍ଥ
ଧନୁଶର ଥୋଇ ଗୋବିନ୍ଦଙ୍କୁ କୋଳେ ଧଇଲେ ଯାଇ ତ୍ୱରିତ ।
ଦେଖିଲେ ସର୍ବାଙ୍ଗେ ଶର ଭେଦିଅଛି ତିଳେ ମାତ୍ର ନାହିଁ ସ୍ଥାନ
ଶର ଉତ୍ପାଟଣ ଔଷଧ ଲେପନ୍ତେ ଚେତା ପାଇଲେ ମୋହନ ।
ଉଠେ କୁନ୍ତୀସୁତ ଅସ୍ଥିର ହୋଇଣ ଗୋବିନ୍ଦ ଚରଣ ଧରି
ବୋଲନ୍ତି ଏ ଦାସ ଦୋଷ କ୍ଷମାକର ଆହେ ଦେବ ଦଇତ୍ୟାରି ।
ନ ଜାଣିଲି ଦୋଷ କ୍ଷମ ପୀତବାସ ମୁଁ ତୋ ସମ୍ବଳର ଧନ
ନମୋ ନମୋ ପ୍ରଭୁ ଅଖିଳର ନାଥ ନମୋ ବ୍ରହ୍ମାଣ୍ଡ କାରଣ
ଏପରି ଅନେକ ପ୍ରକାର ଅର୍ଜୁନ ଶ୍ରୀହରିଙ୍କୁ ସ୍ତୁତି କଲା
ଶିରେ କରଦେଇ ସାଷ୍ଟାଙ୍ଗ ହୋଇଣ ଚରଣରେ ପ୍ରଣମିଲା ।
ଅର୍ଜୁନ ବିନତି ଦେଖି ଦାଶରଥି ତାଙ୍କୁ କଲେ ଆଶ୍ୱାସନା
ତୁମ୍ଭର ଆମ୍ଭର ଏକଆତ୍ମା ଯେଣୁ କପା ହେଉଛ ବିମନା ।
କାହା ବଳ ଏତେ ଏ ତ୍ରୟ ଜଗତ ସଂଗ୍ରାମେ ଜିଣି ପାରଇ
ମୋର ପଞ୍ଚଭୂତ ଅଟୁ ଯେଣୁ ମୋତେ ସଂଗ୍ରାମେ ଜିଣିଲୁ ତୁହି ।
ଏବେ ଯାହା ଇଚ୍ଛା ବର ମାଗ ତୁମ୍ଭ ହେଲି ମୁଁ ତୋତେ ପ୍ରସନ୍ନ
ଏମନ୍ତେ ବୋଲିଣ କୋଳରେ ବସାଇ ପୁଣି କଲେ ଆଲିଙ୍ଗନ ।
ପାର୍ଥ ବୀରବର ଯୋଡ଼ି ବେନିକର ବୋଲେ ହେ ପଙ୍କଜମୁଖ
ଯେବେ କଲ ଦୟା ଦେଇ ପଦଛାୟା ଶତଧନୁ ପ୍ରାଣ ରଖ ।
ପାର୍ଥର ବିନତି ଦେଖି ଶ୍ରୀପତି ବୋଇଲେ ରେ ଶତଧନୁ
ଆଜଠୁଁ ଅଭୟ ଦେଲୁଁ ଆମ୍ଭେ ତୋତେ ଭୟ ତେଜ ତୋର ମନୁ
ଶ୍ରୀକୃଷ୍ଣଙ୍କଠାରୁ ଅଭୟ ପାଇଣ ଶତଧନୁ ଆନନ୍ଦରେ
ବେନିକର ଯୋଡ଼ି ପଦ୍ମପାଦ ତଳେ ପଡ଼ି ଲୋଟଇ ଭୂମିରେ ।

ଆହେ ଜଗନ୍ନାଥ ଅନାଥର ନାଥ କରୁଣାସାଗର ହରି
ଅଶେଷ ମହିମା ଅଟଇ ତୁମ୍ଭର ଆହେ ଦେବ ଦଇତ୍ୟାରି ।
ଲଭେ ଶତଧନୁ ଅଭୟ ପାଇଣ ବୋଲଇ ହେ ବସୁଦେବ
ଅଶେଷ ମହିମା ଅଟଇ ତୁମ୍ଭର ବୋଲି କଲା ନାନା ସ୍ତବ ।
ଶ୍ରୀକୃଷ୍ଣ ମହିମା ପରମ ପବିତ୍ର ଶୁଣି ପରୀକ୍ଷିତ ରାଜା
ଆନନ୍ଦିତ ହୋଇ ମୁନିଙ୍କ ଚରଣେ କଲେ ବହୁମତେ ପୂଜା ।
ଶ୍ରୀକୃଷ୍ଣ ଅର୍ଜ୍ଜୁନ କଳି ଉପାଖ୍ୟାନ ଶ୍ରବଣ କରେ ଯେ ନର
ଭବବାଧା ତାକୁ କିଛି ନ ଲାଗଇ ନ ଥାଇ ଯମର ଡର ।
ଭକତବତ୍ସଳ ଅନାଥର ନାଥ କୃପାମୟ ଭାବଗ୍ରାହୀ
ଭଣେ ଗୋପୀନାଥ ଦୀନ ଅକିଞ୍ଚନ ବାରେ ମୋତେ କର ଚାହିଁ ।
ତୁମ ବିନୁ ମୋର ଅନ୍ୟ କେହି ନାହିଁ ବନ୍ଧୁବାନ୍ଧବାଦି ଜନ
ଏ ଭବସାଗରୁ ଶିଘ୍ର ପାରି କର ଆହେ ପ୍ରଭୁ ଭଗବାନ ।
ଏତିକ ମାଗୁଣି ମୋର ପାଦପଦ୍ମେ ଆହେ ଦୀନବନ୍ଧୁ ହରି
ଯାଉ ମୋର ପ୍ରାଣ ହେ କଞ୍ଜନୟନ ନାରାୟଣ ନାମ ସ୍ମରି ।

ସ ମା ପ୍ତ

---

ପ୍ରିଣ୍ଟର—ଶ୍ରୀ ଜୟନ୍ତ ଷାଠିୟା
ଶ୍ରୀ ରାଧାନାଥ କୋ-ଅପରେଟିଭ ପ୍ରେସ, କଟକ-୨—୧୯୭୨

# ବିଜ୍ଞାପନ

ନିମ୍ନଲିଖିତ ପୁସ୍ତକମାନ ଆମ୍ଭ ନିକଟରେ ସର୍ବଦା ଗଚ୍ଛିତ ଥାଏ ।
ଅଗ୍ରିମ ପଠାଇ ପୁସ୍ତକ ମଗାଇଲେ ଅଧିକ କମିଶନ ଦିଆଯାଏ ।

| | | | |
|---|---|---|---|
| ଗୁଢରତ୍ନାକର | ଟ ୧ । | ବିଲଙ୍କା ରାମାୟଣ | ଟ ୧ ୳ |
| ଲକ୍ଷ୍ମୀପୁରାଣ | ଟ ୦ ।/ | ବୃହତ୍ ଅଗ୍ନିପୁରାଣ | ଟ ୨ ୴ |
| ଅଙ୍ଗଦପଡ଼ | ଟ ୦ ।/ | ଗଙ୍ଗାମାହାତ୍ମ୍ୟ | ଟ ୧ |
| ଅଶ୍ୱମେଧଯଜ୍ଞ | ଟ ୦ ।/ | କାର୍ତ୍ତିକ ମାହାତ୍ମ୍ୟ | ଟ ୧ ୳ |
| ଭୂତକେଳି | ଟ ୦ ।// | ତତ୍ତ୍ୱବୋଧ ୧ ସେ | ଟ ୭ ୳ |
| ଲାବଣ୍ୟବତୀ | ଟ ୦ // | ସୁଦଶାବ୍ରତ କଥା | ଟ ୦ // |
| ଲକ୍ଷ୍ମଣ ଶକ୍ତିଭେଦ | ଟ ୦ // | ଅମର ଜୁମର | ଟ ୦ ୴ |
| ହିନାଷ୍ଟମେଳା | ଟ ୦ /// | ବାମ୍ନ ପୁରାଣ | ଟ ୦ ୴ |
| ନଗରସଂକୀର୍ତ୍ତନ ୧ ସେ | ଟ ୧। | ହନୁ ଅର୍ଜ୍ଜୁନ କଳି | ଟ ୦ // |
| ସହଜ ଇଂରାଜୀ ଶିକ୍ଷା | ଟ ୦।/ | ଚଉପୋଇ ଓଷା | ଟ ୦ ।/ |
| ଝୁଲଣା ସୁଦଶା | ଟ ୧ । | କାହଣୀ ଲହରୀ | ଟ ୦ ।// |
| ଷୋଳକୁଞ୍ଜ ଚଉପଦୀ | ଟ ୦ ।/ | ଚଣ୍ଡୀ ପୁରାଣ | ଟ ୨ ୵ |
| ପ୍ରଭାତ ଅବକାଶ | ଟ ୦ /// | ବରାହ ପୁରାଣ | ଟ ୧ ୳ |
| ରାଧାକୃଷ୍ଣ ମିଳନ | ଟ ୦ /// | ଭବିଷ ପୁରା | ଟ ୧ ୵ |
| ରାଧାକୃଷ୍ଣ ଦାମ୍ପିକା | ଟ ୦ /୭ | ମତ୍ସ୍ୟ ପୁରାଣ | ଟ ୧ ୵ |
| ବୃହତ୍‌ନାମରତ୍ନଗୀତା | ଟ ୧ ୳ | ବ୍ରହ୍ମାଣ୍ଡ ପୁରାଣ | ଟ ୦ ୴ |
| କୋଟିବ୍ରହ୍ମାଣ୍ଡ ସୁନ୍ଦରୀ | ଟ ୫ ୳ | ଗରୁଡ଼ ପୁରାଣ | ଟ ୧ ୳ |

ଓଡ଼ିଶା ଜଗନ୍ନାଥ କମ୍ପାନୀ
ବାଲୁବଜାର
ପୋ:ଅ: ବୁଢ଼ାମାଚଉକ, କଟକ

ପ୍ରୋପ୍ରାଇଟର
ଶ୍ରୀ ଜଗନ୍ନାଥ ସିଂହ